ଦ୍ୱିତୀୟ ବର୍ଷର ଶିଶୁଶ୍ରେଣୀ ନିମନ୍ତେ

ଓଡ଼ିଆ



# ଶିଶୁ ବୋଧ

ଓଡ଼ିଶା ଡିଭିଜନ୍ ସ୍କୁଲସମୂହର ଭୂତପୂର୍ବ ଇନ୍‌ସ୍ପେକ୍ଟର

ରାୟ ମଧୁସୂଦନ ରାଓ ବାହାଦୁର ପ୍ରଣୀତ

ସଂଶୋଧିତ ସଂସ୍କରଣ



ମାକ୍‌ମିଲାନ୍ ଏଣ୍ଡ୍ କୋ., ଲିମିଟେଡ,
କଲିକତା, ବୋମ୍ବାଇ, ମାନ୍ଦ୍ରାଜ, ଲଣ୍ଡନ
(୧୯୨୩)

ମୂଲ୍ୟ । ୦ ୵

ଦ୍ୱିତୀୟ ବର୍ଷର ଶିଶୁଶ୍ରେଣୀ ନିମନ୍ତେ

ଓଡ଼ିଆ

# ଶିଶୁ ବୋଧ



୧

ଓଡ଼ିଶା ବାଳିକା ସ୍କୁଲସମୂହର ଭୂତପୂର୍ବ ଇନ୍ସପେକ୍ଟର

ରାୟ ମଧୁସୂଦନ ରାଓ ବାହାଦୁର ପ୍ରଣୀତ

ସଂଶୋଧିତ ସଂସ୍କରଣ



ମାକ୍‌ମିଲାନ୍ ଏଣ୍ଡ୍ କୋ., ଲିମିଟେଡ୍,

କଲିକତା, ବୋମ୍ବାଇ, ମାନ୍ଦ୍ରାଜ, ଲଣ୍ଡନ

୧୯୨୭

ମୂଲ୍ୟ ୫ ° ୯

## ବିହାର ଓ ଓଡ଼ିଶା ସ୍କୁଲମାନଙ୍କ ବ୍ୟବହାର ନିମନ୍ତେ ମ୍ୟାକ୍‌ମିଲାନ୍-କମ୍ପାନୀ-କୃତ ଓଡ଼ିଆ ପାଠ୍ୟ-ପୁସ୍ତକାବଳୀ

———o———

### ସାହିତ୍ୟ ଓ ବ୍ୟାକରଣ :—

ବର୍ଣ୍ଣବୋଧ ... ରାୟ ମଧୁସୂଦନ ରାଓ ବାହାଦୁର ପ୍ରଣୀତ ... ଟ ॰ ৶

ଶିଶୁବୋଧ (୨ୟ ବର୍ଷର ଶିଶୁ ଶ୍ରେଣୀ ନିମନ୍ତେ) ଐ ଐ ... ଟ ॰ ৶

ବାଲବୋଧ (୧ମ ଓ ୨ୟ ମାନ ନିମନ୍ତେ) ଐ ଐ ... ଟ ॰ ।৶

ବାଲବୋଧ (୧ମ ଓ ୨ୟ ମାନ ନିମନ୍ତେ) ... ଐ ସଂକଳିତ ସଂଶୋଧିତ ସଂସ୍କରଣ } ଟ ॰ ।୵

ସାହିତ୍ୟ କୁସୁମ (୩ୟ ଓ ୪ର୍ଥ ମାନ ନିମନ୍ତେ) ଐ ଐ ... ଟ ॰ ৷୵

ସାହିତ୍ୟ ପ୍ରସଙ୍ଗ (୫ମ ଓ ୬ଷ୍ଠ ମାନ ନିମନ୍ତେ) ଐ ଐ ... ଟ ॰ ৷৶

ବର୍ଣ୍ଣବୋଧ (୧ମ ଓ ୨ୟ ବର୍ଷ ନିମନ୍ତେ) ଜି. ମାର୍ସଡେନ୍ ଓ ରାମଚନ୍ଦ୍ର ରାୟ କୃତ ଟ ॰ ৵

କଥାବଳୀ (୧ମ ଓ ୨ୟ ମାନ ନିମନ୍ତେ) ... ଜି. ମାର୍ସଡେନ୍ ଓ ଚନ୍ଦ୍ରମୋହନ ମହାରଣା, ବି. ଏ. ଙ୍କ କୃତ ... ଟ ॰ ।৵

ଗଦ୍ୟାବଳୀ (୩ୟ ଓ ୪ର୍ଥ ମାନ ନିମନ୍ତେ) ଐ ଐ କୃତ ... ଟ ॰ ৷

ସାହିତ୍ୟ ପାଠ (୫ମ ଓ ୬ଷ୍ଠ ମାନ ନିମନ୍ତେ) ... ଜଗନ୍ନାଥ ମହାପାତ୍ର ଓ ମୃତ୍ୟୁଞ୍ଜୟ ରଥ କୃତ ... ଟ ॰ ৸

* ସୁଗମବୋଧ ବ୍ୟାକରଣ (୫ମ ଓ ୬ଷ୍ଠ ମାନ ନିମନ୍ତେ) ମୃତ୍ୟୁଞ୍ଜୟ ରଥ କୃତ ଟ ॰ ।

ଓଡ଼ିଆ ବ୍ୟାକରଣ (୫ମ ଓ ୬ଷ୍ଠ ମାନ ନିମନ୍ତେ) ମଧୁସୂଦନ ରାଓ କୃତ ... ଟ ॰ ।୵

ଓଡ଼ିଆ ବ୍ୟାକରଣ (୫ମ ଓ ୬ଷ୍ଠ ମାନ ନିମନ୍ତେ) (ଏଥିରେ ଅପେକ୍ଷିତ ଅନୁସୃତ) ... ଉତ୍କଳୀୟ ବହୁଦର୍ଶୀ ଶିକ୍ଷକ ବୃନ୍ଦ ସଂକଳିତ ... ଟ ॰ ।୵

ଲଘୁଶିକ୍ଷା ... ଚନ୍ଦ୍ରମୋହନ ମହାରଣା, ବି. ଏ. ଙ୍କ କୃତ ... ଟ ॰ ।৶

ଓଡ଼ିଆ ଟ୍ରାନ୍ସଲେସନ୍ ଏଣ୍ଡ ରିଟ୍ରାନ୍ସଲେସନ୍ ... ଡବ୍ଲୁ. ଡବ୍ଲୁ. ହେଣ୍ଡରସନ୍, ଏମ୍. ଏ. ଙ୍କ କୃତ ... ... ... ... ଟ ॰ ৸

ପ୍ରବନ୍ଧମାଳା ... ରାୟ ମଧୁସୂଦନ ରାଓ ବାହାଦୁର ପ୍ରଣୀତ ... ଟ ॰ ৷

### ଗଣିତ :—

ପାଟୀଗଣିତ ସଂକ୍ଷିପ୍ତ ପ୍ରଶ୍ନମାଳା ପରୀକ୍ଷୋତ୍ତର (୧ମ ଓ ୨ୟ ମାନ ନିମନ୍ତେ) } ... ଗିରୀଶଚନ୍ଦ୍ର ... ଟ ॰ ।৵

ଦ୍ୱିତୀୟ ବର୍ଷରେ ଶିଶୁଶ୍ରେଣୀ ନିମନ୍ତେ

ଓଡ଼ିଆ

# ଶିଶୁ ବୋଧ

—:୦:—

ଓଡ଼ିଶା ବିଭାଗୀୟ ସ୍କୁଲସମୂହର ଭୂତପୂର୍ବ ଇନସ୍ପେକ୍ଟର

ରାୟ ମଧୁସୂଦନ ରାଓ ବାହାଦୁର ପ୍ରଣୀତ

ସଂଶୋଧିତ ସଂସ୍କରଣ

ମାକ୍‌ମିଲାନ୍ ଏଣ୍ଡ୍ କୋ., ଲିମିଟେଡ୍,

କଲିକତା, ବୋମ୍ବାଇ, ମାନ୍ଦ୍ରାଜ, ଲଣ୍ଡନ

୧୯୨୩

# ସୂଚୀପତ୍ର ।

# ଶିଶୁ ବୋଧ

---

## ସକାଳ ଓ ଦିନ



ସକାଳ ହେଲଣି । ଅନ୍ଧାର ଆଉ ନାହିଁ । ରାତିବେଳେ ଘର, ବଗିଚ୍ଚ, ବିଲ, ପୋଖରୀ, ନଦୀ, ପର୍ବତ, ବଣ, ସବୁ ଅନ୍ଧାରରେ ଲୁଚି ରହିଥିଲେ । ଏବେ ପୂର୍ବ ଦିଗରେ ସୂର୍ଯ୍ୟ ଉଇଁଲଣି । ଦେଖୁଁ ଦେଖୁଁ ସୂର୍ଯ୍ୟର ଆଲୁଅ ଚାରିଆଡ଼େ ମାଡ଼ିଯାଉଅଛି । ଏବେ ଅମ୍ଭେ ସବୁ ଖିଲଉଇ

ଦେଖି ପାରୁଅଛୁଁ । ସୂର୍ଯ୍ୟ ଧୀରେ ଧୀରେ ଉପରକୁ ଉଠି ମୁଣ୍ଡ ଉପରକୁ ଆସିଲେ ଦିନ ଦ୍ୱିପ୍ରହର ହେବ । ଦ୍ୱିପ୍ରହର ଗଡ଼ିଗଲେ ସୂର୍ଯ୍ୟ ଧୀରେ ଧୀରେ ତଳକୁ ଖସି ପଶ୍ଚିମ ଦିଗରେ ବୁଡ଼ିଗଲେ ଦିନ ଶେଷ ହେବ । ସୂର୍ଯ୍ୟର ଆଲୁଅ ଯୋଗୁଁ ଦିନ ହୁଏ । ସେଥିପାଇଁ ସୂର୍ଯ୍ୟକୁ ଦିନକର ବୋଲିଯାଏ । ଦିନବେଳେ ପଶୁ ପକ୍ଷୀ ଆହାର ଖୋଜି ବୁଲନ୍ତି ଓ ମନୁଷ୍ୟମାନେ ନିଜ ନିଜ କାମରେ ଲାଗନ୍ତି ।

ପ୍ରଶ୍ନ—ପୂର୍ବ, ପଶ୍ଚିମ, ସୂର୍ଯ୍ୟ, ବନାନ କର । **ଦିନକର, ଦ୍ୱିପ୍ରହର,** ଉଦିଲଣି, ଏହି ପଦଗୁଡ଼ିକର ଅର୍ଥ କହ ।

---

## ସନ୍ଧ୍ୟା ଓ ରାତ୍ରି

ଦେଖ ସୂର୍ଯ୍ୟ ପଶ୍ଚିମ ଦିଗରେ ବୁଡ଼ି ଯାଉଅଛି । ଏତେବେଳେ ତାହାର ତେଜ କମିଯାଇଅଛି । ସେ କିସୁନ୍ଦର ଲାଲ ଦିଶୁଅଛି । ସୂର୍ଯ୍ୟର ଅସ୍ତ ସମୟକୁ ସନ୍ଧ୍ୟା ବୋଲିଯାଏ । ଦେଖୁ ଦେଖୁ ଅନ୍ଧାର ମାଡ଼ିଆସୁଅଛି । ଆକାଶରେ ଗୋଟି ଗୋଟି ହୋଇ କେତେ ତାରା ଉଇଁ ଆସୁଅଛନ୍ତି । ଏବେ ରାତି ହେଲାଣି । ରାତିବେଳେ ମନୁଷ୍ୟ ପଶୁ ପକ୍ଷୀ ସମସ୍ତେ ନିଦରେ ଶୁଅନ୍ତି । କେତେକ ରାତିରେ ଚନ୍ଦ୍ର ସଞ୍ଜବେଳୁଁ ଆକାଶରେ ଦେଖାଯାଏ । ସେହିସବୁ ରାତିକୁ ଶୁକ୍ଳପକ୍ଷର ରାତି ବୋଲିଯାଏ । କେତେକ ରାତିରେ ଚନ୍ଦ୍ର ସନ୍ଧ୍ୟାବେଳେ ଦେଖାଯାଏ ନାହିଁ । ସେହିସବୁ ରାତିକୁ କୃଷ୍ଣପକ୍ଷର ରାତି ବୋଲିଯାଏ । ଶୁକ୍ଳପକ୍ଷରେ ଚନ୍ଦ୍ର ଦିନକୁଦିନ ବଢ଼ିବାର ଦେଖାଯାଏ । କୃଷ୍ଣପକ୍ଷ ରାତିରେ ଚନ୍ଦ୍ର ଦିନକୁଦିନ ଛୋଟ ହେବାର ଦେଖାଯାଏ । ପୂର୍ଣ୍ଣିମା ରାତିରେ ଚନ୍ଦ୍ର ପୂରା ଗୋଲ

ଦିଶେ । ଅମାବାସ୍ୟା ସନ୍ଧିରେ ଚନ୍ଦ୍ର ଏକାବେଳକେ ଅଦୃଶ୍ୟ ହୋଇ-
ଯାଏ ।

ଚନ୍ଦର ଅଲୂଅ କସୁନ୍ଦର ! ଚନ୍ଦ୍ର ଅଡ଼କୁ ଅନାଇ କ୍ଷୁଦ୍ର ଶିଶୁମାନେ ଆନନ୍ଦରେ ହସନ୍ତି, ଅ ଜହ୍ନମାମୁ ଅ, ବୋଲି ଡାକନ୍ତି ।

ପ୍ରଶ୍ନ—ସନ୍ଧ୍ୟା, ଜହ୍ନ, ବହଳ କର । ଶୁକ୍ଳପକ୍ଷ, କୃଷ୍ଣପକ୍ଷ, ପୂର୍ଣ୍ଣିମା, ଅମାବାସ୍ୟା, ଏଗୁଡ଼ିକର ଅର୍ଥ କହ ।

---

## କହ କହ ମୋର ନାମ କହନ

ନିତ ନିତ ପୂର୍ବ ଦିଗରେ ଉଠି,
ସମସ୍ତ ଅକାଶ ବୁଲଇ ମୁହିଁ ।
ଅନ୍ଧାର ପଳାଏ ମୋର ଉଦୟେ,
ପେଚକ ଲୁଚଇ ମୋହର ଭୟେ ।
ମୁଁ ଉଠିଲେ ଜାଗ ତୁମ୍ଭେ ସକଳେ,
କି ଚାହିଁଇ ମୋତେ କେ ଭୂମଣ୍ଡଳେ ?
ପାଇ ମୋ ଅଲୂଅ ମୋହର ତେଜ
ସଂସାର ଉଜ୍ଜ୍ୱଳ ଦିଶଇ, ହେଜ ।
କେ ମୋର ତେଜକୁ ପାରିବ ସହି ?
ମୁଁ ସବୁ ଜଗତ ଯାଉଇ ଦହି ।
ଜଳେ ସ୍ଥଳେ ପଡ଼େ ମୋର କିରଣ,
ଉଜ୍ଜ୍ୱଳ ସୁନ୍ଦର ଦିଶେ ଭୁବନ ।

ମୋ ଲାଗି ବଢ଼ନ୍ତି ତରୁଲତାଏ,
ସରୋବରେ ପଦ୍ମ କି ଶୋଭା ପାଏ!
ପଶୁ ପକ୍ଷୀ କୀଟ ପତଙ୍ଗଗଣ
ମୋ ଯୋଗୁଁ କରନ୍ତି ପ୍ରାଣ ଧାରଣ।
ଦେଖିଅଛ ମୋତେ ହେ ଶିଶୁଗଣ,
କହ ତେବେ ମୋର ନାମ ବହନ।

ପ୍ରଶ୍ନ—୧। ଯେତକ, ଭୂମଣ୍ଡଳ, ଉଜ୍ଜ୍ୱଳ, ସରୋବର ଓ ବହନ, ଏଗୁଡ଼ିକର ଅର୍ଥ କହ।

୨। ସୂର୍ଯ୍ୟଙ୍କୁ କିଏ ଘୋଡ଼ାଇପକାଏ ?

୩। ସୂର୍ଯ୍ୟର ଅନ୍ୟ ତିନୋଟି ନାମ କହ।

---

## ଗୋଟିଏ ଚଢ଼େଇ ତା ଛୁଆକୁ ଚୁଆଉଅଛି



ମା, ମୁଁ ଏକ୍ଷଣି ଗୋଟିଏ ବଡ଼ କୌତୁକ ଦେଖିଲି।
କଅଣ ଦେଖିଲୁ ରେ ଧନ ?

ଗୋଟିଏ ଛୁଆ ଚଢ଼େଇ ମୁଡ଼ି ଖାଇଲା ।

ତୁ କଣ ଦେଖି ନାହୁଁ, କେତେ ଚଢ଼େଇ ଏଣେ ତେଣେ ବୁଲୁଥାନ୍ତି ।

ଖାଇବା ଜିନିଷ ପାଇଲେ ଥଣ୍ଟରେ ଖୁଣ୍ଟି ଖାନ୍ତି ।

ହଁ, ତା ଦେଖିଛୁ ଯେ, ଏତେକ୍ଷଣି ଗୋଟିଏ ନୂଆ କଥା ଦେଖିଲି ।

କଅଣ ନୂଆ ଦେଖିଲୁ, କହ ।

ମୁଁ ଆମର ଦୁଆର ଆଗରେ ମୋ ଖାଇବା ମୁଢ଼ିରୁ ଟିକିଏ ପକାଇ-ଦେଇଥିଲି । ଗୋଟିଏ ଘରଚଟିଆ ଚଢ଼େଇ ଉଡ଼ିଆସି ଥଣ୍ଟରେ ଗୋଟାଏ ମୁଢ଼ି ଖୁଣ୍ଟିନେଲା, ଉଡ଼ିଯାଇ ପାଚେରି ଉପରେ ବସିଲା । ସେ ପାଚେରି ଉପରେ ଗୋଟାଏ ଛୁଆ ଚଢ଼େଇ ବସିଥିଲା । ବଡ଼ ଚଢ଼େଇ ଛୁଆ ଚଢ଼େଇ ପାଖକୁ ଗଲା । ଛୁଆ ଚଢ଼େଇଟି ଥଣ୍ଟ ମେଲା କରିଦେଲା, ଆଉ ବଡ଼ ଚଢ଼େଇଟି ସେହି ମେଲା ଥଣ୍ଟ ଭିତରକୁ ମୁଢ଼ିଟି ଗଳାଇଦେଲା । ବଡ଼ ଚଢ଼େଇଟି ଏହିପରି ଥରକୁଥର ମୁଢ଼ି ଥଣ୍ଟରେ ନେଇଯାଇ ଛୁଆକୁ ଖୁଆଇଲା ।

ତା ଦେଖି ଅରେ ଧନ, ଖୁସି ତୋହର ମନ ।
ତୋ ହସହସ ମୁଖ, ଦେଖି ମୋହର ସୁଖ ।

**ପ୍ରଶ୍ନ**—ବଡ଼ ଚଢ଼େଇ ତା ଛୁଆକୁ କିପରି ଖୁଆଇଲା କହ ।

---

## ହରିହର

ଅମ୍ଭ ଗ୍ରାମରେ ହରିହର ନାମରେ ଗୋଟିଏ ଭଲ ପିଲା ଅଛି । ତାହାର ବୟସ ୯ ବର୍ଷ । ସମସ୍ତେ ତାହାକୁ ଭଲ କହନ୍ତି । ମୁଁ ଦିନେ ତାଙ୍କ ଘରକୁ ଯାଇଥିଲି । ତାହାର ପିତା ଅଖଣ୍ଡଳ ମିଶ୍ର ଘର ପିଣ୍ଡାରେ ବସିଥିଲେ । ମୁଁ ସେଠାକୁ ଗଲାରୁ ସେ ମୋତେ ଆଦର କରି ବସାଇଲେ ।

ମୁଁ ଦେଖିଲି ଯେ, ସେହି ପିଣ୍ଡାର ଡାହାଣକୁ ବାଡ଼ଦିଆ ଚଉକୋଣିଆଁ ଖଣ୍ଡେ ଜମି ଅଛି ଓ ସେହି ଜମିରେ ବାଢ଼ିଅଁଲା, ମନ୍ଦାର, ମଲ୍ଲୀ, ଯୂଇ, ନଅଗ, ଅପରାଜିତା, ତୁଳସୀ ଆଦି କେତେଗୁଡ଼ିଏ ଗଛ ଲାଗିଅଛି । ମୁଁ କହିଲି ମିତ୍ରେ, ତୁମ୍ଭର ଏହି ସାନ ବଗିଚାଟି ସୁନ୍ଦର ହୋଇଅଛି । ମିତ୍ରେ କହିଲେ ହରିହର ତାକୁ ନିଜ ହାତରେ କରିଅଛି । ସେ ପ୍ରତିଦିନ ଗଛମୂଳରେ ପାଣି ଦିଏ, ଜାଗାଟି ଓଳେଇଦିଏ ଓ ଅନାବନା ଘାସ ଉଠିଲେ ଉପାଡ଼ିଦିଏ । ମୁଁ କହିଲି, ହରିହର କାହିଁ? ମିତ୍ରେ ତାହାକୁ ଡାକିବାରୁ ସେ ଘର ଭିତରୁ ଆସି ମୋତେ ଦେଖି ନମ୍ରଭାବରେ ନମସ୍କାର କଲା । ମୁଁ ତାକୁ ଦୁଇ ତିନୋଟି ଗୁଣ୍ତ ଅଙ୍କ ପଚାରିଲି । ସେ ଠିକ୍ ଉତ୍ତର ଦେଲା । ମିତ୍ରେ କହିଲେ "ତୁହି ମା ଜନମଭୂମି," ଗୀତଟି ଗା । ସେ ମଧୁର ସ୍ୱରରେ ଗୀତଟି ଗାଇଲା । ମୁଁ ତାହାର ହସ୍ତାକ୍ଷର ମଧ୍ୟ ଦେଖିଲି । ଲେଖା କହିଁଟି କି ନିର୍ମଳ! ଟିକିଏ ସୁଦ୍ଧା କାଳିର ଦାଗ ନାହିଁ । ଅକ୍ଷରଗୁଡ଼ିକ ମୁକ୍ତାପରି ସୁନ୍ଦର । ମୁଁ ହରିହରକୁ ଦେଖି ବଡ଼ ଖୁସି ହେଲି ଏବଂ ଘରକୁ ଆସି ତାହାପାଇଁ ଖଣ୍ଡେ ରାମାୟଣ ପୁସ୍ତକ ଓ ଦୁଇଟି ଗୋଲାପ ଗଛ ପଠାଇଦେଲି ।

ପ୍ରଶ୍ନ—ଅପରାଜିତାଫୁଲର, ମନ୍ଦାରଫୁଲର, ଚମ୍ପାଫୁଲର ଓ ଗୋଲାପଫୁଲର ବର୍ଣ୍ଣ କହ ।

---

## ଅମୀର୍

ଜମୀର୍ ମିଆଁଙ୍କ ପୁଅ ଅମୀର୍ ବଡ଼ ଭଲ ପିଲା । ତାହାର ପିତାମାତା ଯାହା କରିବାକୁ କହନ୍ତି, ସେ ତାହା କରେ । ସେମାନେ ଯାହା ମନା କରନ୍ତି, ସେ କରେ ନାହିଁ ।

ସେ ସବୁବେଳେ ସଫା ସୁତର ରହିବାକୁ ଭଲପାଏ । ତାହାର ଦେହ କିମ୍ବା ଲୁଗା ମଇଳା ହେଲାକ୍ଷଣି ସେ ତାହା ସଫା କରେ । ସେ ସକାଳୁ ଉଠି ମୁହଁ ହାତ ଭଲରୂପେ ଧୁଏ । ଗାଧୋଇଲାବେଳେ ସେ ଦେହର ସର୍ବାଙ୍ଗ ଉତ୍ତମରୂପେ ଘଷି ସଫା କରେ ।

ସେ ପ୍ରତିଦିନ ପାଠଶାଳାକୁ ଯାଏ । ସେ କେବେ ଉଚ୍ଛୃଙ୍ଖଳ କରେ ନାହିଁ । ସେ ପାଠଶାଳାରେ ପାଟି କରେ ନାହିଁ । ଶିକ୍ଷକ ମହାଶୟ ପଢାଇଲାବେଳେ ସେ ଅନ୍ୟ ସଙ୍ଗରେ କଥା କହେ ନାହିଁ । ସେ ମନ ଦେଇ ତାହାର ପାଠଗୁଡିକ ଶିଖେ । ସେ ପ୍ରତିଦିନ ଯତ୍ନ କରି ହସ୍ତାକ୍ଷର ଲେଖେ । ସେ ପୁସ୍ତକ, ସ୍ଲେଟ, ଦୁଆତ, କଲମ, ପେନ୍‌ସିଲ, ଲୁଗା, ଯୋତା ପ୍ରଭୃତି ତାହାର ସବୁ ଦ୍ରବ୍ୟ ଯଥାସ୍ଥାନରେ ସଜାଡି ରଖେ ।

ପ୍ରଶ୍ନ—୧ । ସର୍ବାଙ୍ଗ, ହସ୍ତାକ୍ଷର, ଯଥାସ୍ଥାନରେ, ଏଗୁଡ଼ିକର ଅର୍ଥ କହ ।
୨ । ଦେହକୁ ସଫା ନ ରଖିଲେ କି ଅପକାର ହୁଏ ?

---

## ସିଂହ ଓ ମୂଷା

ଗୋଟାଏ ସିଂହ ଖରାରେ ବୁଲି ବୁଲି ଥକା ହୋଇ ଗୋଟିଏ ଗଛ ମୂଳରେ ଶୋଇଥିଲା । ସେହି ସମୟରେ ଗୋଟିଏ ମୂଷା ସେହି ବାଟରେ ଯାଉଁ ଯାଉଁ ଅଜାଣତରେ ସିଂହ ଉପରେ ଚଢ଼ିଗଲା । ସିଂହର ନିଦ ଭାଙ୍ଗିଗଲା ଓ ସେ କ୍ରୋଧରେ ମୂଷାକୁ ମାରିପକାଇବାକୁ ବସିଲା । ମୂଷା ଭୟରେ ଥରି ଥରି କହିଲା ହେ ପ୍ରଭୁ, କ୍ଷମା କର, ମୋତେ ମାର ନାହିଁ । ସିଂହ ଦୟାରେ ମୂଷାକୁ ଛାଡିଦେଲା ।

କିଛିକାଳ ପରେ ସିଂହ ଦିନେ ବଣରେ ବୁଲୁ ବୁଲୁ ଶବର ଜାଲରେ ପଡି ଘୋର ରଡିକଲା । ମୂଷା ସେହି ଶବ୍ଦ ଶୁଣି ଶୀଘ୍ର



ସେଠାକୁ ଆସି ତାହାର ପ୍ରାଣଦାତା ସିଂହ ଯେଉଁ ଜାଲରେ ପଡ଼ିଥିଲା, ସେହି ଜାଲକୁ ତୀକ୍ଷ୍ଣ ଦନ୍ତରେ କାଟିପକାଇଲା । ସିଂହ ଜାଲରୁ ମୁକ୍ତ ହେଲା ।

ପ୍ରଶ୍ନ—୧ । କ୍ଷୁଦ୍ର, ମହତ୍, ପ୍ରାଣଦାତା, ଏଗୁଡ଼ିକର ଅର୍ଥ କହ ।
୨ । ତୁମ୍ଭେମାନେ ସାନ ପିଲା । ତୁମେ ଅନ୍ୟ ଲୋକର କି ହିତ କରିପାର, କହ ।

---

## ବେଙ୍ଗ ଓ ପିଲାମାନେ

ଦିନକରେ କେତେଗୁଡ଼ିଏ ବାଳକ ଗୋଟିଏ ପୋଖରୀ କୂଳରେ ଆନନ୍ଦରେ ଖେଳୁଥିଲେ । ସେଥିମଧ୍ୟରୁ କେତେଜଣ ପାଣିକି ଢେଲା ପକାଉଥିଲେ । ସେ ପୋଖରୀରେ ବହୁତ ବେଙ୍ଗ ଥିଲେ । ଢେଲାଗୁଡ଼ାକ କେତେକ ବେଙ୍ଗ ଦେହରେ ବାଜିବାରୁ ସବୁ ବେଙ୍ଗମାନେ ଲଫୁଥିଲେ

ଅରହନ୍ତ ହେଲେ । ସବାଶେଷରେ ଗୋଟାଏ ବୁଢ଼ା ବେଙ୍ଗ ପାଣି ଉପରୁ ମୁଣ୍ଡ କାଢ଼ି କହିଲା ହେ ପିଲାମାନେ, ଆମ ଉପରକୁ ଢେଲା ପକାଅ ନାହିଁ । ବାଳକମାନେ କହିଲେ ଆମେତ ଖେଳୁଛୁଁ, ତୁମକୁ କଣ ମାରୁଛୁଁ ? ବୁଢା ବେଙ୍ଗ କହିଲା ମୁଁ ତାହା ଜାଣେ ଯେ, ମାତ୍ର ତୁମର ଢେଲାଗୁଡ଼ାକତ ଆମ ଦେହରେ ଆସି ବାଜୁଛି । ତୁମର ଯେ ଖେଳ, ଆମକୁ ସେ କାଳ ।

ପ୍ରଶ୍ନ—ଏ କଥାରୁ କଅଣ ଶିଖିଲ ?

---

## ପବନ

ମୋତେ ନୟନରେ   କେହି ଦେଖି ନାହିଁ,
ଅଛି ମୁହିଁ ସବୁଠାରେ ।
ସମସ୍ତଙ୍କୁ ଛୁଇଁ   ପଳାଇଯାଏ ମୁଁ
କିଏ ମୋତେ ଧରିପାରେ ?
ଦୋହଲାଇ ନଦୀ—   ସମୁଦ୍ରର ଜଳ
ତରୁ ଲତା ପୁଷ୍ପ ଫଳ
ଆକାଶରେ ମେଘ—   ମାଳକୁ ଚଳାଇ
ବୁଲଇ ମୁହିଁ ଚଞ୍ଚଳ ।
ମହାବେଗେ ଯେବେ   ବୁଲଇ ଜଗତେ
ଭାଙ୍ଗିଯାଏ ଘର ଦ୍ୱାର ।
ଉପୁଡି ପଡ଼ଇ   ବଡ଼ ବଡ଼ ବୃକ୍ଷ
ପଡ଼ଇ ଏ ହାହାକାର ।

ମୋ ବନା ବସ୍ତୁର ନବ ଏ ଜଗତେ
ମୁଁ ତ ଜୀବର ଜୀବନ
ମୋ ନାମ କହ ହେ ବାଳକ ବାଳକା
—ଅରେ ପବନ ପବନ ।

ପ୍ରଶ୍ନ—୧ । ମେଘମାଳ, ନୟନ, ହାହାକାର, ଏଗୁଡକର ଅର୍ଥ କହ ।
୨ । ମୁଁ ତ ଜୀବର ଜୀବନ, ଏ କଥାଟି ବୁଝାଇଦଅ ।

---

## ଗ୍ରାମ

### (୧)

ବରପଦା ନାମରେ ଗୋଟିଏ ଗ୍ରାମ ଅଛୁ । ସେହ୍ନ ଗାଁରେ ମନୁ ବୋଲ ଗୋଟିଏ ପିଲାର ଜନ୍ମ ହୋଇଥିଲା । ମନୁ ଦୁଇ ବର୍ଷ ବୟସରୁ ବାପା ଓ ମାଙ୍କ ସଙ୍ଗରେ କଟକ ସହରକୁ ଆସିଥିଲା । କଟକରେ ଚାରିବର୍ଷ ରହିଲା ପରେ ସେ ବାପ ଓ ମାଙ୍କ ସଙ୍ଗରେ ଗ୍ରାମକୁ ଫେରି ଆସିଲା । ସହରରେ ସାନ ବଡ଼ କୋଠାଘରମାନ ଲଗାଲଗି ହୋଇ ଥାଏ । ଦନ-ଯାକ ଲୋକଗହଳ ଲାଗିଥାଏ ; ଗାଡ଼ି ଘୋଡ଼ାର ଶବ୍ଦ ଓ ଲୋକଙ୍କର ଚହଲ ଶୁଣାଯାଉଥାଏ । ମନୁ ଗ୍ରାମକୁ ଆସି ଦେଖିଲା ଯେ, ଗ୍ରାମରେ ପ୍ରାୟ ସବୁ ଚାଳଘର, ପୁଣି ସେଗୁଡକ ଛଡ଼ା ଛଡ଼ା । ଗହଳ ଚହଲ କିଛି ନାହିଁ । ଚାରିଅଡ ମେଲା । ଗ୍ରାମ ତାକୁ ବଡ଼ ଭଲ ଲାଗିଲା । ତାକୁ ଖୁସି ହେବାର ଦେଖି ବାପା କହିଲେ, ତୁ ସହରରୁ ଗ୍ରାମକୁ ଆସିଅଛୁ । ଏଠାରେ ବିଲ, ତୋଟା, ପଡ଼ିଆ, ପଦ୍ମପୋଖରୀ, ଏସବୁ ଦେଖିଲେ ତୁ ଅଧିକ ଖୁସି ହେବୁ । ମନୁ କହିଲା ବାପା, ମୋତେ ସେସବୁ ଦେଖାଇ-ଦଅ । ବାପା କହିଲେ କାଲି ଦେଖାଇ ଦେବି ।

# ଗ୍ରାମ

## (୧)

ତହୁଁ ପରଦିନ ସକାଳେ ମନୁ ଓ ତାହାର ବଡ଼ ଭଉଣୀ ଉମା ବାପାଙ୍କ ସଙ୍ଗରେ ବୁଲି ବାହାରିଲେ । ବାପା କହିଲେ ଚାଲ, ସୂର୍ଯ୍ୟ ଯେଉଁଆଡ଼େ ଉଇଁ ଆସୁଅଛି ସେହି ଆଡ଼କୁ ଯିବା । ସେହି ଆଡ଼ଟା ପୂର୍ବ ଦିଗ । ତୁମ୍ଭେମାନେ ପୂର୍ବ ଦିଗକୁ ଅନାଇଅଛ । ଏହିକ୍ଷଣି ତୁମ୍ଭର ଡାହାଣ ହାତ ଆଡ଼ଟା ଦକ୍ଷିଣ, ବାଁ ହାତ ଆଡ଼ଟା ଉତ୍ତର ଦିଗ, ଓ ତୁମ୍ଭର ପଛ ଆଡ଼ଟା ପଶ୍ଚିମ ଦିଗ । ଯାଉଁ ଯାଉଁ ସେମାନେ ଗୋଟାଏ ବଡ଼ ପଡ଼ିଆ ଦେଖିଲେ । ଆହୁରି ଦେଖିଲେ ଯେ ଗୋରୁ ପଲ ପଲ ହୋଇ ସେ ପଡ଼ିଆକୁ ଆସୁଅଛନ୍ତି । ଗୋରୁମାନଙ୍କ ସଙ୍ଗରେ ବାଛୁରି ମଧ୍ୟ ଚାଲିଛନ୍ତି । ମନୁ ପଚାରିଲା ଏତେ ଗୋରୁ କାହିଁକି ଏଠାକୁ ଆସୁ-ଅଛନ୍ତି ? ବାପା କହିଲେ ପଡ଼ିଆରେ ଘାସ ଅଛି, ଗୋରୁ ବାଛୁରି ଏଠାରେ ଚରିବେ । ପଡ଼ିଆରେ ଡାହାଣ ଦିଗରେ କେତେଗୁଡ଼ାଏ ତାଳଗଛ ଦିଶୁଥିଲା । ମନୁ ପଚାରିଲା ସେସବୁ କି ଗଛ ? ଉମା କହିଲା ସେସବୁ ତାଳଗଛ, ଦେଖ, ପେଣ୍ଡା ପେଣ୍ଡା ହୋଇ ତାଳଫଳ ଫଳିଅଛି । ସେମାନେ ତାଳ-ବଣିଆ ପାଖକୁ ଆସିଲେ । ବାପା ହାତ ବଢ଼ାଇ କହିଲେ ଏଇଟା ପଦ୍ମପୋଖରୀ । ମନୁ କହିଲା କାହିଁ ପାଣିତ ନାହିଁ, ପୋଖରୀ କେମନ୍ତ ହେଲା । ଖାଲି ବଡ଼ ବଡ଼ ପତ୍ର ଆଉ ଅନେକ ନାଲିଆ ଫୁଲ ଦିଶୁଅଛି । ବାପା କହିଲେ ସେହି ଯେ ବଡ଼ ବଡ଼ ଗୋଲ ପତ୍ରର ବନ ମାଡ଼ି ଯାଇଅଛି ସେଇ ପଦ୍ମବନ, ପଦ୍ମବନ ପୋଖରୀର ପାଣିକି ଘୋଡ଼ାଇପକାଇଅଛି । ଆହା, କି ସୁନ୍ଦର ପଦ୍ମଫୁଲ ଫୁଟିଅଛି ! ଏହା କହି ସେ ଯୋଡ଼ାଏ ଫୁଲ ତୋଳି ଆଣି ଗୋଟିଏ ଫୁଲ ମନୁକୁ, ଆଉ ଗୋଟିଏ ଉମାକୁ ଦେଲେ । ଉମା ଓ ମନୁ ଫୁଲ ପାଇ, ବଡ଼ ଖୁସି ହୋଇ

ତାହାକୁ ଦେଖି ଶୁଙ୍ଘିବାକୁ ଲାଗିଲେ । କିଛିକ୍ଷଣ ପରେ ଉମା କହିଲା ମନୁ, ସେ ଗାଈଟିକୁ ବାହୁଙ୍ଗାରେ କିଏ ଦୋହୁଁଛି କହିଲୁ । ମନୁ କହି ପାରିଲା ନାହିଁ । ଉମା କହିଲା ସେଇଟା ବାୟାଚଢ଼େଇର ବସା । ଶୁଣିନାହୁଁ, ଆଉ ତୋତେ କୋଳରେ ଝୁଲାଇ ଝୁଲାଇ ଗୀତ ବୋଲନ୍ତି, ବାୟା ଚଢ଼େଇର କି ଯାଏ, ବା କଲେ ବସା ଦୋହଲୁଥାଏ । ବାପା କହିଲେ ଦେଖ, ଏଠାରେ କେତେ ଚଢ଼େଇ ଯୋଡ଼ ଯୋଡ଼ ହୋଇ ବୁଲୁଛନ୍ତି ଓ କି ମଧୁର ସ୍ୱରରେ ଏକ ଅପରକୁ ଡାକୁଛନ୍ତି । ଉମା କହିଲା ମନୁ ଦେଖ, କଜଳପାତି ଚଢ଼େଇ କଜଳପାତି ପରି ଦିଶୁଚି । ମନୁ କହିଲା ଅହା, କେଡ଼େ ସୁନ୍ଦର ହଳଦିଆ ଚଢ଼େଇଟିଏ ! ଉମା କହିଲା ବାପା, ସେଇଟି ହଳଦୀବସନ୍ତ ନୁହେଁ କି ? ବାପା କହିଲେ ହଁ, ଏ ଓଳି ଏତିକି ଥାଉ । ବେଶି ଖରା ହେଲାଣି, ଚାଲ ଘରକୁ ଲେଉଟି ଯିବା ।

---

## ଗ୍ରାମ

### (୧)

ଉପରଓଳି ଉମା ଓ ମନୁ ବାପାଙ୍କ ସଙ୍ଗରେ ପୁଣି ବୁଲି ବାହାରିଲେ । ବାପା କହିଲେ ଚାଲ, ଯେଉଁଆଡ଼େ ସୂର୍ଯ୍ୟ ବୁଡ଼ିଯାଉଅଛି ସେହି ଆଡ଼କୁ ଯିବା । ସକାଳେ କହିଦେଇଥିଲି ସେହି ଆଡ଼ଟା ପଶ୍ଚିମ ଦିଗ । ଏତେବେଳେ ତୁମେ ପଶ୍ଚିମ ଆଡ଼କୁ ଅନାଇଅଛ । ପୂର୍ବ ଦିଗ ଆଡ଼କୁ ଅନାଇଲାବେଳେ ତୁମର ଡାହାଣ ଆଡ଼କୁ ଦକ୍ଷିଣ ଦିଗ ଓ ବାଁ ଆଡ଼କୁ ଉତ୍ତର ଦିଗ ଥିଲା । ଏହିକ୍ଷଣି ତୁମେ ପୂର୍ବ ଦିଗର ଓଲଟା ଆଡ଼କୁ ଅନାଇଅଛ । ସେଥିଲାଗି ତୁମର ଡାହାଣ ଅଡ଼କୁ ଉତ୍ତର ଦିଗ ଓ ବାଁ ଅଡ଼କୁ ଦକ୍ଷିଣ ଦିଗ ଅଛି । ଏବେ ଚାଲ, ବଗିଚା ଦେଖିଆସିବା । ସେମାନେ ବଗିଚା ଭିତରକୁ ଗଲେ । ବାପା କହିଲେ ଏ ବଗିଚାରେ

ଅନେକ ଫଳଗଛ ଅଛି । ଉମା କହିଲା ଏଇଠା ପଣସଗଛ, ଏଥିରେ କେତେ ପଣସ ଫଳିଅଛି । ମଧୁ କହିଲା ସେଇଠା ଅମ୍ବଗଛ, ମୁଁ ଅମ୍ବ ଚଢ଼ିଛି । ଜ୍ୟେଷ୍ଠରେ ଅମ୍ବ ଫଳନ୍ତି । ଉମା କହିଲା ଆହୁରି କେତେ ଗଛ ଅଛି । ଗୁଆ, ନଡ଼ିଆ, ନାରଙ୍ଗ, ବରକୋଳି, ବେଲ । ବାପା କହିଲେ, ସନ୍ଧ୍ୟାବେଳ ହେଲାଣି, ଚାଲ, ଘରକୁ ଲେଉଟି ଯିବା ।

ପ୍ରଶ୍ନ—୧ । ଗ୍ରାମ ଓ ସହର ମଧ୍ୟରେ କି ପ୍ରଭେଦ ଅଛି ?

୨ । ଦଶଗୋଟି ପକ୍ଷୀର ନାମ କହ ।

୩ । ଦଶଗୋଟି ବଡ଼ ବଡ଼ ଫଳଗଛର ନାମ କହ ।

---

## ହାତୀ ଓ ବିଲୁଆ

ଥରେ ଜଙ୍ଗଲରେ ବିଲୁଆମାନେ ଗୋଟିଏ ହାତୀକୁ ଦେଖି ବିଚାର କଲେ ଯେବେ ଏ ହାତୀଟା ମରନ୍ତା, ତାହାହେଲେ ଏହାର ମାଂସ ଖାଇ ଆମ୍ଭର ଚାରିମାସ ସୁଖରେ କଟିଯାନ୍ତା । ତାହା ଶୁଣି ଗୋଟାଏ ବୁଢ଼ିଆ ବିଲୁଆ କହିଲା ମୁଁ ବିଚାରିଲେ ଏହାକୁ ଉପାୟ କରି ମାରିଦେବି । ଏହା କହି ସେ ହାତୀ ଆଗକୁ ଗଲା ଏବଂ ଦଣ୍ଡବତ ହୋଇ କହିଲା ମହାରାଜ, ଆପଣଙ୍କୁ ଏ ବନସ୍ତରେ ରଜା କରିବାକୁ ବିଚାର କରି ସବୁ ଜନ୍ତୁମାନେ ମୋତେ ପଠାଇଛନ୍ତି । ଚଞ୍ଚଳ ଆସନ୍ତୁ । ନୋହିଲେ ଆଉ ଢେର ହୋଇଯିବ । ହାତୀ ଏହା ଶୁଣି ତରତର ହୋଇ ତାହା ପଛେ ପଛେ ଧାଇଁଲା । ବିଲୁଆ ଆଗେ ଆଗେ ବାଟ କଢ଼ାଇ ଯାଉଥାଏ । ହାତୀ ଯାଉଁ ଯାଉଁ ଗୋଟାଏ ପଙ୍କବାଟରେ ପଡ଼ିଗଲା । ସେ ଗହିରା ପଙ୍କରୁ ଆଉ

ଗୋଡ଼ କାଢ଼ି ଉଠି ପାରନ୍ତି ନାହିଁ । ବିଲୁଆ ଆଗରେ ଶୃନଯାଇ ସବୁ ବିଲୁଆଙ୍କୁ ଡାକିଥିଲା । ସମସ୍ତେ ହାତୀକୁ ଏପରି କାଦୁଅରେ ଛଟପଟ ହେଉଥିବାର ଦେଖି, ଖୁସି ହୋଇ ତାକୁ ବେଢ଼ିଗଲେ । କେତେକ



ହାତୀକୁ ନ ଡରି ଉପରକୁ ଚଢ଼ିଲେ ଏବଂ କାମୁଡ଼ା ତାହା ଦେହକୁ ଚମଡ଼ା ଉପାଡ଼ି ମାଂସ ଖାଇବାକୁ ଲାଗିଲେ । ବିଲୁଆ ବଳୁଆ ନ ହେଲେ କଅଣ ହେବ, ହାତୀଠାରୁ ବେଶି ବୁଦ୍ଧିଆ । ଏଥିପାଇଁ କହନ୍ତି ବଳକୁ ବଳ ବଡ଼ ବୁଦ୍ଧି ।

## ପାରା-ଗୀତ



ବକୁମ ବକୁମ ବକୁମ     ବକୁମୁରେ ପାରା
ଫୁଲିଗଲେ ଅଣ୍ଟି     ନ ଦଏ ଧରା
ପାରା ବକୁମଇ     ଫୁଲଇ ବେକ
ପଡ଼ିଶାଙ୍କ ଘରେ     ଦେଖାଏ ଠେକ ।
ଗୋଟି ଗୋଟି ଦାନା—     ଦେଲେ ଖୋଇଣ
ଗୋଟାଇ ନଏ ସେ     ହୋଇ ହରଷ
ପାରା ଉଡ଼ିଯାଏ     ମେଘ ଉପର
ଘୁରି ଘୁରି ମୋତେ     ମାଡ଼ଇ ଡର ।
ଅରେ ଅରେ ପାରା     ନ ଯାଅ ଉଡ଼ି
ବାଜିଗଲେ ଡେଣା     ପଡ଼ିବ [illegible] ।
ଲୋଟଣି ପାରାଟି     ଖୁଣ୍ଟଇ [illegible]
ଉଠେ ଦେଖି ଖାଇ     [illegible] ।
ଖାଇଙ୍କୁ ଦେବୁ ଭୁ     ଚଣ ଶିଖାଇ
ଖୋଲିବ ପେଲବ     ସହର ଭଣାଇ
ବାଜିଲଣି ପାଞ୍ଚ     ଗଲୁଣି ଅଧ
କହିବନ୍ତୁ ଏବେ     ବେମା ପିହା ଦେଖି ।

ଓଡ଼ିଶା ରହିଛୁ    ଧାନ ପୁରଇ
ଧାନ ହୋଉଥିବୁ    ମୋ ଘରେ ଥାଇ
ମାଠିଆରେ ଘଡ଼ୁ    ଭାଉର ପାଣି
ନନାଉଛୁ ଯେତେ    ଦେବ ମୁଁ ଆଣି ।

ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜ ।

ପ୍ରଶ୍ନ—୧ । ପୁରଇ, ନେଇ, ଭାଉରପାଣି, ଏଗୁଡ଼ିକର ଅର୍ଥ କହ ।
୨ । ଦଶଗୋଟି ଉଦ୍ଭିଦର ନାମ କହ ।

---

## ଧାନ କ୍ଷେତ



ଗୋପାଳ—ଆସ, ଧାନକ୍ଷେତ ଆଡ଼କୁ ଯିବା । ଧାନ ପାଚିଲାଣି । ଏହିକାଳି ଧାନକ୍ଷେତ ଦେଖିବାକୁ କି ସୁନ୍ଦର । ଧାନ କଟା ସରିଲେ କ୍ଷେତ ଆଉ ସୁନ୍ଦର ଦିଶିବ ନାହିଁ ।

ମଦନ—କ୍ଷେତରେ ଧାନ କିପରି ଫଳୁଛି?

କହ୍ନେଇ—ଏବେ ଚଷାମାନେ ଜମିକୁ ଚଷ କରନ୍ତି । ଲଙ୍ଗଳ ଧରି ବଳଦକୁ କପାଇ ଚଷନ୍ତି, ତୁ କଣ ଦେଖି ନାହୁଁ ।

ଦନେଇ—ହଁ, ଦେଖିଛି, ଦୁଇଟା ବଳଦର କାନ୍ଧ ଉପରେ ଜୁଆଳି-କାଠଖଣ୍ଡ ପଡ଼ିଥାଏ । ଜୁଆଳି ଦେହରେ ଲଙ୍ଗଳକାଠ ବନ୍ଧା ହୋଇ-ଥାଏ । ଜଣେ ମଣିଷ ଖଣ୍ଡେ ପାଞ୍ଚଣକାଡ଼ିରେ ବାଡ଼େଇ ବଳଦକୁ ଅଡ଼ାଉଥାଏ ।

କହ୍ନେଇ—ଗୋଟିଏ କଥା କହି ପାରିଲୁ ନାହିଁ । ଚଷାମାନେ ଲଙ୍ଗଳ କାଠଦେହରେ ଖଣ୍ଡେ ଲୁହାଫାଳ ଲଗାଇଥାନ୍ତି । ବଳଦ ଚାଲିଲା-ବେଳକୁ ସେହି ଲୁହା ଭୂଇଁକୁ ଖୋଳିପକାଏ । ଏହିପରି ବିଲକୁ ଅନେକଥର ଚଷି ମାଟି ଉପରେ ମଇ ବୁଲାଇଲେ ମାଟି ସମାନ ହୋଇ-ଯାଏ । ତହିଁଉତ୍ତାରେ ସେମାନେ ଲଙ୍ଗଳଦ୍ୱାରା ମାଟିରେ ସିଆର କାଟି-ଦିଅନ୍ତି । ବର୍ଷା ଆରମ୍ଭରେ ଚଷା ଗଉଣିରେ ଧାନ ପୂରାଇ ସେ ଗଉଣିକୁ ଅଣ୍ଟାରେ ଥୋଇ ସିଆରମାନଙ୍କରେ ବିହନ ବୁଣିଯାନ୍ତି ।

ଦନେଇ—ବିହନ କଅଣ ?

କହ୍ନେଇ—କ୍ଷେତରେ ଯେଉଁ ଧାନ ବୁଣାଯାଏ ତାକୁ ବିହନ କହନ୍ତି । ବର୍ଷାପାଣି ପାଇ ବିହନ ଗଜା ହୋଇ ବଢ଼ିଯାଏ । ହାତେ ହାତେ ବଢ଼ି-ଗଲେ ବିଲରୁ ଅନାବନା ଘାସସବୁ ଉପାଡ଼ିଦିଅନ୍ତି । ତହିଁଉତ୍ତାରେ ହଳକରି ମଇଦେଇ ଘାସ ବାଛିଦେଲେ ଧାନର ବେଉସଣ ହେଲା । ବେଉସଣ ହୋଇଗଲେ ଧାନଗଛରୁ ଧାନ ବାହାରେ । ଦେଖ, ଗୋଟିଏ ଗୋଟିଏ ଗଛରୁ କେତେ ଧାନକେଣ୍ଡା ବାହାରିଛି । ଧାନ ପାଚିଗଲେ, ଚଷାମାନେ ଦାଆରେ ଧାନ କାଟି ବଡ଼ା ବଡ଼ା ବନ୍ଧ ଗୋଟିଏ ନିର୍ମଳ ସ୍ଥାନକୁ ନେଇଯାନ୍ତି । ସେ ସ୍ଥାନକୁ ଖଳା କହନ୍ତି । ଖଳାରେ ଚାରି ପାଞ୍ଚଟା ବଳଦକୁ ଦାଉଣୀରେ ଏକାଠି ବନ୍ଧ ଧାନହଳା ପକାଇଦେଇ ତା ଉପରେ ବେଙ୍ଗଳା ବୁଲାଇ ଧାନ ଅମଳ କରନ୍ତି ।

# ମୂଷା, ବେଙ୍ଗ ଓ ଛଞ୍ଚାଣ କଥା



ପୋଖରୀ କୂଳରେ ଗୋଟିଏ ଗାତ ଭିତରେ ମୂଷାଟିଏ ଥାଏ । ଦଇବ ଯୋଗରେ ଗୋଟିଏ ବେଙ୍ଗ ସାଙ୍ଗରେ ତାହାର ପରିଚୟ ହେଲା । ବେଙ୍ଗ ତାକୁ ସାଥୀ ପାଇ ଏକାଠି ରହିବା ଓ ଏକାସାଙ୍ଗରେ ବୁଲିବା ପାଇଁ ଦୁହିଙ୍କ ଗୋଡ଼କୁ ଗୋଟିଏ ସୂତାରେ କିଛିଦୂର ଛଡ଼ାରେ ବାନ୍ଧିଦେଇଥିଲା । ଏଣେ ମୂଷା ଗାତରୁ ବାହାରି ଭୂମି ଉପରକୁ ଉଠିବାକୁ ଗଲା । ବେଙ୍ଗ ହାଣିଡ଼ୋଳି ସଙ୍ଗରେ ଯାଉଥାଏ ଏବଂ ଯାହା ପାଉଥାଏ ଖାଉଥାଏ । କିଛିକ୍ଷଣ ପରେ କୂଳକୁ ଆସି ବେଙ୍ଗ ପାଣିରେ ପଶିଲା । ମୂଷା ସେ ସୂତାରେ ହାଣିଡ଼ୋଳି ପାଣିରେ ପଡ଼ିଲା । ସେ ତ ମାଟିରେ ରହିବା ଜୀବ । ପାଣିରେ ବୁଡ଼ିଯାଇ ମରିଗଲା । ବେଙ୍ଗ ସେହି ମଲା ମୂଷାକୁ ସେପରି ଟେହୁପରି ବୁଲୁଥାଏ । ମୂଷାଟି ଫୁଲିଯାଇ ଉପରକୁ ଦିଶୁଥିଲା । ଏହି ସମୟରେ ଉପରେ ଗୋଟିଏ ଛଞ୍ଚାଣ ତାକୁ ଦେଖି ହଠାତ୍ ତଳକୁ ମାରି ନଖରେ ଧରି ଉପରକୁ ଉଠିଲା । ତାହା ସଙ୍ଗେ ସଙ୍ଗେ ସୂତାରେ ଝୁଲୁଥିବା ବେଙ୍ଗଟି ମଧ୍ୟ ତଳଆଡ଼କୁ ପାଟି ପାଲୁପାଲୁ କରି ଶୂନ୍ୟରେ ଛଟପଟ ହେଲା । ଛଞ୍ଚାଣ ଗଛ ଡାଳରେ ବସି ସେହି ମଲା ଜୀଅନ୍ତା ଦୁହିଙ୍କୁ ଖାଇଦେଲା ।

ଏଥିରୁ ଜଣାଗଲା, ଯେ ପରର ମନ୍ଦ ପାଞ୍ଚୁଥାଏ ତାହାର ଅବଶ୍ୟ ଶେଷେ ମନ୍ଦଫଳ ହେବ ।

# ବରଗଛ



ବରଗଛ ଖୁବ ବଡ଼ ଗଛ ଅଟେ । ଏହାର ଡାଳମାନ ବହୁତ ଦୂର ଝୁଲିଯାଏ । ଏପରି ଅନେକ ବଡ଼ ବରଗଛ ଅଛି, ଯାହା ତଳରେ କେତେ ବାଟୋଇ ଖରାବେଳେ ଓ ବର୍ଷାକାଳରେ ଆଶ୍ରା ନେଇ ରହନ୍ତି । ବର ଗଛର ଡାଳମାନଙ୍କରୁ ଅନେକ ଶିଅ ବାହାରି ତଳକୁ ତଳକୁ ଓହ୍ଲାଇ ଆସି ଶେଷରେ ମାଟିକୁ ଭେଦ ଦେହୁରେ ପଶିଯାଏ । ସେହି ଶିଅମାନଙ୍କୁ ଓହଳ ବୋଲିଯାଏ । ବରଗଛ ବଡ଼ ସୁନ୍ଦର ଅଟଇ ଓ ତାହାର ଓହଳ-ଗୁଡ଼ିକ ଖମ୍ବପରି ଦିଶେ । ଏ ଗଛ କେତେ ପ୍ରାଣୀର କେତେ ଉପକାର କରେ । ଖରାବେଳେ ଏହାର ଛାୟାରେ ବସିଲେ ଆମ୍ଭମାନଙ୍କର ଦେହ ଶୀତଳ ହୋଇଯାଏ । ଶତ ଶତ ପକ୍ଷୀ ଏହାର ଡାଳରେ ବସି ଏହାର ସୁନ୍ଦର ନାଲିଆ ଫଳ ଖାଇ ମିଷ୍ଟ ସ୍ୱରରେ ଗାନ କରନ୍ତି । ଗୋରୁ, ମହିଷ ପ୍ରଭୃତି କେତେ ଜନ୍ତୁ ଏହାର ଛାୟାରେ ଶୋଇ ପାକୁଳ କରନ୍ତି ।

ଖେଳ ବୁଲିଯିବା ନଦୀର ତଟ,
ଅଛି ଯହିଁ ବଡ଼ ପୁରୁଣ ବଟ ।
ତରୁ ମଧ୍ୟେ ରଜା ଅଟଇ ବର
ପତ୍ର-ଛତ୍ର ତାର କେଡ଼େ ସୁନ୍ଦର ।
ଛାୟା ତାର ଅହା କି ସୁଶୀତଳ
କି ସୁନ୍ଦର ଦିଶେ ତାହାର ଫଳ ।
ବଡ଼ ଖରା ଏବେ ବୈଶାଖ ମାସ,
ବଟ ତରୁ ତଳେ ବସିବା ଆସ ।

ପ୍ରଶ୍ନ—ଓହଳ କାହାକୁ କହନ୍ତି ? ତରୁ ମଧ୍ୟେ ରଜା ଅଟଇ ବର, ଏ କଥାଟି ବୁଝାଇଦିଅ ।

---

## ଗୋରୁ

ଗୋରୁ ବଡ଼ ଉପକାରୀ ଜନ୍ତୁ । ମନୁଷ୍ୟମାନେ ମାଈ ଗୋରୁ ବା ଗାଈର ଦୁଧ ପିଅନ୍ତି । ସେଥିପାଇଁ ଗାଈକୁ ଗୋ-ମାତା କହନ୍ତି । ଗାଈର ଦୁଧରୁ ଦହି, ଛେନା, ଲହୁଣି, ଘିଅ ହୁଏ ।

ଗାଈର ଗୋବର ଅନେକ କାମରେ ଲାଗେ । ମାଟି, ଗୋବର, ପାଣି ମିଶାଇ ସେଥିରେ ଘରତଳ ଓ କାନ୍ଥ ଲିପାଗଲେ ଘର ନିର୍ମଳ ଓ ସୁନ୍ଦର ଦିଶେ । ଲୋକେ ଗୋବରକୁ ଘସି କିମ୍ବା ଗୁଣ୍ଡା କରି ଖରାରେ ଶୁଖାଇ ଜାଳ କରନ୍ତି । ଗୋବରକୁ ଖତ କରି କ୍ଷେତରେ ଦେଲେ ମାଟିର ବଳ ବଢ଼େ ଓ ଭଲ ଶସ୍ୟ ହୁଏ ।

ଅଣ୍ଡିରା ଗୋରୁକୁ ଷଣ୍ଢ କହନ୍ତି । ଯେଉଁ ଅଣ୍ଡିରା ଗୋରୁ ପିଲାବେଳେ ଖସିଯାଇଥାଏ ତାହାକୁ ବଳଦ କହନ୍ତି । ଏ ଦେଶରେ ଲୋକେ ବଳଦ ଦ୍ୱାରା ଭୂମି ଚଷନ୍ତି ଓ ବଳଦକୁ ଶଗଡ଼ରେ ଯୋଚି ଭାରୀ ଦ୍ରବ୍ୟମାନ ବୋହିନିଅନ୍ତି । ଗାଈର ଛୁଆକୁ ବାଛୁରି କହନ୍ତି ।



ଶୀତ ଓ ଗ୍ରୀଷ୍ମ ବଳ ହରଣ । ସୁଝିଯାଉ ତାଙ୍କ ଉପରେ ଗାଈ ବାଛୁରିଙ୍କି ବଡ଼ ଯତ୍ନ କରନ୍ତି । ସେମାନେ ଭଲ ଘାସ ଆଣି ଗାଈ ବାଛୁରିଙ୍କି ଖୁଆନ୍ତି ଓ ଘଣ୍ଟି ବାନ୍ଧନ୍ତି । ଘଣ୍ଟିବେଳବେଳେ ଗାଈ ବାଛୁର ଲେଖ ଦେଖାଯାଉଥାନ୍ତି । ଯେଉଁ ବାଳକବାଳିକାମାନେ ଗାଈ ବାଛୁର ଓ ଅନ୍ୟ ପୋଷା ଜନ୍ତୁଙ୍କୁ ଆଦର କରନ୍ତି ସେମାନେ ଭଲ ପିଲା ।

ପ୍ରଶ୍ନ—(୧) ଗୋରୁ ଆମ୍ଭମାନଙ୍କର କି ଉପକାର କରେ ?

(୨) ଲୋକେ ଗୋରୁ ଛଡ଼ା ଆଉ କି କି ଜନ୍ତୁ ପୋଷନ୍ତି ? ସେ ଜନ୍ତୁମାନଙ୍କ ଦ୍ୱାରା ଆମ୍ଭମାନଙ୍କର କି ଉପକାର ହୁଏ ?



## ହାଟ

ଅନେକ ଗ୍ରାମରେ ହାଟ ବସେ । ଲୋକେ ଧାନ, ଚାଉଳ, ଲୁଗା ପଇସା, ପାନ, ଗୁଅ, ମସଲା ଆଦି ନାନା ଦ୍ରବ୍ୟ ବିକିବା ଓ କିଣିବା ପାଇଁ ସେଠାକୁ ଆସନ୍ତି । ସପ୍ତାହ ମଧ୍ୟରେ ଦୁଇ କିମ୍ବା ତିନି ଦିନ ହାଟ ବସେ । ସକାଳ ପହରକ ବେଳୁଁ ଚାରି ଦୁଇଘଡି ଯାଏ ହାଟରେ ବିକା କିଣା ଲାଗିଥାଏ ।

ବାସୁଦେବ କହିଲା ବାପା, ମୋତେ ଦିନେ କହିଥିଲ ହାଟ ଦେଖାଇ-ଦେବ । ଆଜି ରବିବାର ହାଟପାଳି, ଆଜି ମୋତେ ହାଟକୁ ନେଇ ଚାଲ । ବାପା କହିଲେ ହଉ ଚାଲ, ଆଜି ତୋତେ ହାଟ ଦେଖାଇ ଆଣିବି । ଏହା କହି ବଳରାମ ମହାପାତ୍ର ତାଙ୍କ ପୁଅ ବାସୁଦେବଙ୍କୁ ସଙ୍ଗରେ ଘେନି ହାଟକୁ ଗଲେ । ବାଟରେ କେତେ ଲୋକ ଯାଉଥାନ୍ତି । ହାଟ ନିକଟ ହେଲାରୁ ଘୋଘୋ ଶବ୍ଦ ଶୁଭିଲା । ବାସୁଦେବ ପଚାରିଲା ବାପା, ଏପରି ଘୋଘୋ ଶବ୍ଦ କାହିଁକି ହଉଛି ? ବାପା କହିଲେ ହାଟରେ ବହୁତ ଲୋକ ରୁଣ୍ଡ ହୋଇ ଏକସମୟରେ କଥା କହୁଛନ୍ତି ବୋଲି ଏପରି ତହଳ ଶୁଭୁଛି ।

ବାପ ପୁଅ ଦୁହେଁ ହାଟରେ ପହୁଞ୍ଚିଲେ । ବାସୁଦେବ ସ୍ଥାନେ ସ୍ଥାନେ ବାଇଗଣ, କଦଳୀ, ଆଳୁ, କାକୁଡି, କଖାରୁ, କନ୍ଦମୂଳ ଗଦା ଗଦା ଢିଆ-ହୋଇଥିବାର ଦେଖି ପଚାରିଲା ଆଜି କଣ ସବୁ ପରିବାପାଚ ବିକା ହୋଇ ପାରିବ ? ବାପା କହିଲେ କେତେ ଲୋକ କିଣିବା ପାଇଁ ଆସି-ଅଛନ୍ତି । ଆହୁରି ଆସିବେ । ସନ୍ଧ୍ୟାବେଳକୁ ସବୁ ସରିଯିବ ।

ଲୁଗା ଦୋକାନ ଦେଖି ବାସୁଦେବ କହିଲା ମୋତେ କସ୍ତାଯୋଡା କିଣିଦିଅ । ମହାପାତ୍ରେ କାପୋଡିଆ ସଙ୍ଗେ ଭାଉ କରି ଦେଢ଼ ଟଙ୍କା ଦେଇ କସ୍ତା ଯୋଡା କିଣିଲେ ଏବଂ ବାସୁଦେବ ଜଳପାନ କରିବ ବୋଲି

ଛୁଟଖଇ ଓ ଭଲ କୋଷ କିଣି ଦେଲେ । ବାସୁଦେବ ଭାରି ଖୁସି ହୋଇ ବାପାଙ୍କ ସଙ୍ଗରେ ସନ୍ଧ୍ୟାବେଳେ ଘରକୁ ଫେରିଆସିଲା ।

ପ୍ରଶ୍ନ—(୧) ତୁମ ଗାଁ ନିକଟରେ କେଉଁ ହାଟ ଅଛି ? ସହରରେ ବଜାର କାହାକୁ କହନ୍ତି ?

(୨) ଚହଲ, ଛାପୋଡ଼ିଆ, ଏହି ପଦଦୁଇଟିର ଅର୍ଥ କହ ।

---

## ମିଛୁଆକୁ କେହି ବିଶ୍ୱାସ କରନ୍ତି ନାହିଁ

ଗୋବିନ୍ଦ ନାମରେ ଜଣେ ଗଉଡ଼ପିଲା କୌଣସି ବନ ନିକଟରେ ଗୋରୁ ଚରାଉଥିଲା । ଦିନେ ସେ ରଙ୍ଗ ଦେଖିବା ପାଇଁ ମିଛରେ ପାଟିକରି ଡାକପକାଇଲା କିଏ ଅଛ, ଧାଇଁ ପଡ଼ ହୋ, ଧାଇଁ ପଡ଼ ହୋ, ମୋ ଗୋଠରେ ଗୋଟାଏ ବାଘ ପଶି ଗୋରୁଗୁଡ଼ାକ ମାରିପକା-ଉଛି । ପାଖରେ ଚଷାସବୁ ହଳ କରୁଥିଲେ । ସେମାନେ ତାହାର ରଡ଼ି ଶୁଣି ଦୌଡ଼ିଆସିଲେ । ଆସି ଦେଖିଲେ ଯେ ବାଘ ନାହିଁ, ଗୋବିନ୍ଦ ଠୋ ଠୋ ହସୁଛି । ତହୁଁ ସମସ୍ତେ ଗୋବିନ୍ଦର ଭଣ୍ଡପଣିଆ ବୁଝିପାରି ତାହାକୁ ଗାଳିଦେଇ ଚାଲିଗଲେ ।

ଆଉ ଦିନେ ସତକୁ ସତ ବାଘ ଆସି ଗୋବିନ୍ଦର ଗୋଠରେ ପଶିଲା । ବାଘ, ବାଘ, ବାଘ, କିଏ ଅଛ ହୋ, ଧାଇଁ ଆସ ହୋ, ବୋଲି ସେ ଡାକପକାଇଲା । ମାତ୍ର ସମସ୍ତେ ତାହାର ଡାକ ଶୁଣି ସୁଦ୍ଧା ନ ଶୁଣିଲା ପରି ରହିଲେ । ସମସ୍ତେ କହିଲେ ସେ ମିଛରେ ଡାକୁଛି । ପଛେ ଦେଖାଗଲା, ବାଘ ଦୁଇ ତିନୋଟା ଗୋରୁ ଆଉ ଗୋବିନ୍ଦାକୁ ମାରିପକାଇ ଚାଲିଯାଇଛି ।

ପ୍ରଶ୍ନ—(୧) ରଙ୍ଗ, ଚହଲାର, ଭଣ୍ଡପଣ ଓ ଯୋଠ, ଏ ପଦଗୁଡ଼ିକର ଅର୍ଥ କହ ।

(୨) ଗୋବିନ୍ଦ-ଚରିତ୍ରର କଥା ମୁହଁରେ କହିଯାଅ ।

---

## ତିନୋଟି ବାଳକ

ଜୟପୁର ଗ୍ରାମର ତିନୋଟି ବାଳକ ମୌଦା ଗ୍ରାମର ସ୍କୁଲରେ ପଢୁଥିଲେ । ଜୟପୁର ମୌଦାଠାରୁ ପୂରା ପାଞ୍ଚ କୋଶ ଦୂର । ସେଥି-ପାଇଁ ସେହି ବାଳକମାନେ ସ୍କୁଲର ଛାତ୍ରାବାସରେ ବସା କରି ରହୁଥିଲେ । ସେହି ବାଳକମାନଙ୍କର ନାମ ମାଧବ, ଗୋବିନ୍ଦ ଓ ଦୀନବନ୍ଧୁ । ଦିନେ ମାଧବର ମା ତାପାଇଁ କେତେଗୁଡ଼ାଏ ମଣ୍ଡା ପିଠା ପଠାଇ ଦେଇଥିଲେ । ମାଧବ ତାହା ପାଇ ଲୋଭରେ ଗୋଟି ଗୋଟି କରି ଅଧଘଣ୍ଟା ମଧ୍ୟରେ ସବୁ ପିଠାଯାକ ଖାଇପକାଇଲା, କିନ୍ତୁ ଅଳ୍ପକ୍ଷଣ ପରେ ତା ଦେହ ଅସୁସ୍ଥ ହୋଇପଡ଼ିଲା । ପେଟ ଛାଣିଲା, ବାନ୍ତି ହେଲା ଓ କେତେ ଥର-ଯାଏ ଝାଡ଼ା ହେଲା । ତାହା ଦେଖି ଶିକ୍ଷକ ମହାଶୟ ବୈଦ୍ୟଙ୍କୁ ଡକାଇ ଆଣିଲେ । ବୈଦ୍ୟ ତିନି ଚାରି ଦିନଯାଏ ଔଷଧ ଦେବାରୁ ମାଧବର ଦେହ ସୁସ୍ଥ ହେଲା ।

ଆଉ ଦିନେ ଗୋବିନ୍ଦର ମା ମଧ୍ୟ ତାପାଇଁ କେତେଗୁଡ଼ାଏ କାକରା ପିଠା ପଠାଇଦେଲେ । ଗୋବିନ୍ଦ ବଡ଼ ସାବଧାନ । ସେ ମାଧବର ପୀଡ଼ା କଥା ଜାଣିଥିଲା । ସେଥିପାଇଁ ସେ ପିଠାଗୁଡ଼ାକ ଏକାବେଳକେ ନ ଖାଇ ସେଗୁଡ଼ାକ ପେଡ଼ିରେ ବନ୍ଦ କରି ରଖି ପ୍ରତିଦିନ ଗୋଟିଏ ଲେଖାଏ ଖାଇଲା । ସେହିପରି ପାଞ୍ଚ ଛଅ ଦିନ ଗଲା । ତହିଁଉତ୍ତାରେ,

ବାଙ୍କ ପିଠାଗୁଡ଼ିକ ଗନ୍ଧେଇଯିବାରୁ ମାଧବ ଆଉ କଣ କରିବ, ସେ-
ଗୁଡ଼ିକ ଫୋପାଡ଼ିଦେଲା ।

ଆଉ ଦିନେ ଦୀନବନ୍ଧୁର ମା ତାପାଇଁ କେତେଗୁଡ଼ିଏ ଆରିଷାପିଠା ପଠାଇଦେଲେ । ଦୀନବନ୍ଧୁ ସଙ୍ଗୀ ବାଳକମାନଙ୍କୁ ଆଦରରେ ଡାକି ଅଧେ ପିଠା ସେମାନଙ୍କୁ ଖୁଆଇଲା, ନିଜେ ମଧ୍ୟ ଖାଇଲା । ବାଙ୍କ ପିଠା ରଖିଦେଲା । କିଛିକ୍ଷଣ ପରେ ଗୋଟିଏ ବୁଢା ଅନ୍ଧ ଛାତ୍ରାବାସର ଦ୍ୱାରକୁ ଆସି ଗୀତ ଗାଇଲା । ବାଳକମାନେ ଘରଭିତରୁ ଆସି ତାହାର ଗୀତ ଶୁଣିବାକୁ ଲାଗିଲେ । ଦୀନବନ୍ଧୁ ଦେଖିଲା ଯେ ଅନ୍ଧଲୋକଟି ଗୀତ ଗାଉଅଛି, ଏଣେ ପୁଣି ତା ଆଖିରୁ ଲୁହ ବୋହିଯାଉଅଛି । ଦୀନବନ୍ଧୁ ଅନ୍ଧକୁ ପଚାରିଲା ତୁମେ କାହିଁକି କାନ୍ଦୁଚ ? ଅନ୍ଧ କହିଲା ମୋର କେହି ନାହିଁ । ମୋର ଭେଣ୍ଡା ପୋଢିଲା ପୁଅ ଦୁଇମାସ ହେଲା ମରି-ଯାଇଅଛି । ମୁଁ ଦ୍ୱାର ଦ୍ୱାର ଭିଖ ମାଗି ବୁଲୁଚି । କାଲିଠାରୁ କିଛି ଖାଇ ନାହିଁ । ଦୀନବନ୍ଧୁ ସେହିକ୍ଷଣି ଘରଭିତରକୁ ଚାଲିଯାଇ ବାଙ୍କ ପିଠାତକ ଆଣି ଅନ୍ଧକୁ ଦେଲା । ମହାପ୍ରଭୁ ତୁମର ମଙ୍ଗଳ କରନ୍ତୁ ବୋଲି କହି ଅନ୍ଧ ଆନନ୍ଦରେ ପିଠାଗୁଡ଼ିକ ଖାଇଲା । ଦୀନବନ୍ଧୁ ମଧ୍ୟ ବଡ଼ ଖୁସି ହେଲା । ସେ ଯେବେ ଅପେ ଖାଇଥାନ୍ତା, ତାହାର ଏତେ ଆନନ୍ଦ ହୁଅନ୍ତା ନାହିଁ ।

ପ୍ରଶ୍ନ—(୧) ଛାତ୍ରାବାସ, ଅଶ୍ରୁ, ମଙ୍ଗଳ, ଚକ୍ଷୁ, ଏ ପଦଗୁଡ଼ିକର ଅର୍ଥ କହ ।

(୨) ଏ ଛନ ପିଲାଙ୍କ ମଧ୍ୟରେ କିଏ ସବୁଠାରୁ ଭଲ ?
ତୁମେ କାହିଁକି ତାକୁ ଭଲ କହୁଅଛ ?

## ବେଙ୍ଗରଜା



ହେଲା ଘୋର ବରଷା
ଗରଜିଲେ ସଘନେ
ବିଜୁଳି ଚମକ ଦେଖାଇ
ଜଳଧରେ ଗଗନେ ।
ମୁଷଳ ଧାରରେ ଅକାଶୁ
ଖସି ପଡ଼ଇ ଜଳ
କ୍ଷଣକେ ମଧ୍ୟରେ ଉଚ୍ଛୁଳି—
ପଡ଼େ ସ୍ରୋତ ପ୍ରବଳ ।
କୁଢ଼ିରେ ରଢ଼ିଲେ ପ୍ରଜାଏ
ଦେଖି ବେଙ୍ଗରାଜନ
ଗଛମୂଳ ଗାଡ଼ ଉପରେ
ଭଲ ଖୋଲି ବଦନ ।

ଚତୁଷ୍ପଦ-ଛନ୍ଦ ଛଳରେ
ରହି ସୁଖେ ବେଷ୍ଟଣେ
ଚଙ୍ଗ ଚଙ୍ଗ ବେଙ୍ଗ ପ୍ରଜାଙ୍କୁ
ଦମ୍ଭ ଦେଲ ଏସନେ ।
ଶୁଣ ଶୁଣ ମୋର ପ୍ରଜାଏ
ଡର କଥା ତୁମ୍ଭର
ସ୍ୱଗ ଇନ୍ଦ୍ର ପଶୁ ଦେଖାଏ
ଗର୍ବ ଅମ୍ଭ ପ,ଣର ।
ଏକସ୍ୱରେ ଡାକ ଘଡ଼ରେ
ପଶୁ ଅକାଶେ ଯାଇ
ସବୁ ଦେବତାଏ ଜାଣନ୍ତୁ
ଇନ୍ଦ୍ରର ଏ ବଡ଼ାଇ ।
ବୃଷ୍ଟିକି କଲେ ଯେ ବଧ ତା
ନଷ୍ଟେ ପ୍ରତିବିଧାନ
କରିବେ ଏଥର, ଶୁଣିଲେ
ତୁମ୍ଭ ଡାକକୁ ଜାଣ ।
ତୁହାଇ ତୁହାଇ ଡାକରେ
କାନ ହେଉ ବହିରା
ଏ ଗର୍ବୀ ମାନବେ ଦେଖନ୍ତୁ
ପଶୁ ହୋଇଣ ଛିଡ଼ା ।
ରହୁ ରହୁ ଛିଡପଡ଼ିଲା
ବୃଷ୍ଟି ବରଷା ଖରେ
ଶ୍ରବଣ ବଧିର ହୋଇଲା
ତାଙ୍କ ଡାକ ନ ସରେ ।

# ଆଶ୍ଚର୍ଯ୍ୟ ଖଜୁରିଗଛ

କେତେକ ବର୍ଷ ପୂର୍ବରେ ମାନ୍ଦ୍ରାଜ ଅଞ୍ଚଳରେ ନେଲୋର ଜିଲ୍ଲାରେ ଗୋଟିଏ ଆଶ୍ଚର୍ଯ୍ୟ ଖଜୁରିଗଛ ଥିବାର ଖବରକାଗଜରୁ ଶୁଣାଯାଇଥିଲା । ସେ ଗଛଟି ଦିନବେଳେ ଶୋଇଥାଏ ଏବଂ ରାତି ହେଲେ ଉଠି ଠିଆ ହୁଏ । ଏ କଥା ସତ କି ମିଛ ବୁଝିବା ପାଇଁ ସେ ଅଞ୍ଚଳର କେତେଜଣ ବଡ଼ଲୋକ ଉପରବେଳେ ସେ ଗଛ ପାଖକୁ ଯାଇ ଦେଖିଲେ ଗଛଟି ସେତେବେଳେ ନଇଁପଡ଼ିଛି ଏବଂ ଭୂମିରୁ ୭ । ୮ ହାତ ଉପରକୁ ଉଠିଛି । ତାହାର ବାହୁଙ୍ଗା ସେତେବେଳେ ତଳକୁ ଲାଗିଥିଲା । ଜଣେ ଭଦ୍ର ବ୍ୟକ୍ତି ସେଥିରେ ଖଣ୍ଡିଏ ରୁମାଲ ବାନ୍ଧିଦେଇ ଗଲେ । ପାଞ୍ଚ ଛଅ ଘଣ୍ଟା ପରେ ରାତିକି ଆସି ଦେଖିଲେ ଯେ, ସେ ଗଛଟି ବହୁତ ଉପରକୁ ଉଠିଯାଇଛି ଏବଂ ରୁମାଲଖଣ୍ଡି ୧୨ ହାତ ଉପରେ ଅଛି । ରାତି ଯେତିକି ବେଶି ହେଉଥାଏ, ଗଛ ସେତିକି ସଳଖ ହେଉଥାଏ । ଶେଷରାତିକୁ ପୁଣି ଗଛ ତଳଆଡ଼କୁ ନଇଁବାକୁ ଲାଗିଲା । ଏପରି ଆଶ୍ଚର୍ଯ୍ୟ ଘଟଣା ଦେଖି ସେ ଅଞ୍ଚଳର ମୂର୍ଖ ଲୋକେ ସେ ଗଛରେ କୌଣସି ଦେବତା ଅଛନ୍ତି ବୋଲି ବିଶ୍ୱାସ କରି ପୂଜା କରୁଥିଲେ ।

ଆମ୍ଭମାନଙ୍କ ପରି ବୃକ୍ଷର ମଧ୍ୟ ନିଦ୍ରା ଅଛି । ତୁମ୍ଭେମାନେ ଦେଖିଥିବ ଦିନଶେଷରେ ଅଗସ୍ତି ତେନ୍ତୁଳି ଆଦି ବୃକ୍ଷର ପତ୍ର ମୁଦିହୋଇଯାଏ, ସେତେବେଳେ ସେ ଶୋଉଥାନ୍ତି । ଗଛକୁ ମଧ୍ୟ ଶୀତ ବାଧେ । ଡାଳ ହାଣିପକାଇଲେ ବାଧିଯାଏ । ଅଉ କେତେ କେତେ ଲକ୍ଷଣ ଅଛି, ତୁମ୍ଭେ ବଡ଼ିଗଲେ ଅଳ୍ପେ ଅଳ୍ପେ ସେସବୁ କଥା ଜାଣିପାରିବ ।

---

## ଚଟଶାଳୀ ମେଲଣି

ଦନ ବଛ ଭଟ ଭକ୍ତ ହୋଇ ଗୁରୁ
କହନ୍ତୁ ମଧୁର ବାଣୀ
ପୋଥିପତ୍ର ରଖି ଭକ୍ତ ହୃଦ ଚଟେ
ଗାଅ ଗାଅ ହେ ମେଲଣି ।
ଗୁରୁ ଅଜ୍ଞା ପାଇ ବାଳକ ବାଳିକା
ବାନ୍ଧି ପୋଥିପତ୍ର ବିଡ଼ା
ମେଲଣି ପାଇବା ପାଇଁ ଚଟମାନେ
ଯେଝା ସ୍ଥାନେ ହେଲେ ଛିଡ଼ା ।
କଲେ ଅବଧାନେ କର ଯୋଡ଼ି ଠିଆ—
ହେଲେ ସେହୁଁ ଭକ୍ତିଭରେ
କର ଯୋଡ଼ି ତହୁଁ ଗାଇଲେ ସକଳେ
ଏହି ଗୀତ ଆନନ୍ଦରେ ।

---

## ଗୀତ

ଧନ୍ୟ ଧନ୍ୟ ମହାପ୍ରଭୁ . ତୁମ୍ଭର କୃପାରେ
ଆନନ୍ଦେ ରହିଲୁଁ ଅଜ୍ଞ ତୁମ୍ଭର ସଂସାରେ
ତୁମ୍ଭର କୃପାରେ ପାଇ— ଅଛୁଁ ପିତା ମାତା
ପାଇଛୁଁ କୃପାରେ ତବ ଗୁରୁ ଜ୍ଞାନଦାତା ।
ଭାଇ ଭଗ୍ନୀ ଦେଇଅଛ ହେ ପରମେଶ୍ୱର
ଗଢ଼ିଅଛ ଆକାଶ ପୃଥିବୀ ସାଗର ।
ସୂର୍ଯ୍ୟ ଚନ୍ଦ୍ର ତାରା ମେଘ ଅନଳ ପବନ
ପଶୁ ପକ୍ଷୀ ମୀନ ଆଦ ଯେତେ ଜୀବଗଣ ।

ତରୁ ଲତା ପୁଷ୍ପ ଫଳ    ଗିରି ନଦୀ ବନ
ସବୁ କରଅଛ ତୁମ୍ଭେ    ହେ ଅଧିକାରଣ ।
ତୁମ୍ଭର କରୁଣା ପ୍ରଭୁ    ଅଟଇ ଅପାର
କର ଯୋଡ଼ି କରୁଅଛୁଁ    କୋଟି ନମସ୍କାର ।
ଧନ୍ୟ ଜ୍ଞାନ ଧନ୍ୟ ପୁଣ୍ୟ    ଧନ୍ୟ ହେ ସୁମତି
ଜୟ ଜୟ ଜୟ ପ୍ରଭୁ    ହେ ଜଗତ-ପତି ।

ପ୍ରଶ୍ନ—(୧) ମେଲ୍ଲଣି, ସୃଷ୍ଟି, କୃପାସାଗର, ଅନଳ, ଗିରି, ଅଧିକାରଣ, କରୁଣା, ଜଗତପତି, ଏ ପଦମାନଙ୍କର ଅର୍ଥ କହ ।

(୨) ମେଲଣି ଗୀତଟି ସମସ୍ତେ ମିଳି ସମସ୍ୱରରେ ଗାଅ ।

---

Printed at the Orissa Mission Press, by S. F. Robinson.
for the Publishers.

